# କୃପାଭିକ୍ଷା ଚଉତିଶା

ଲେଖିକା—

ଶ୍ରୀମତୀ ନିଶାମଣୀ ଦେବୀ



ପ୍ରକାଶକ

ଶ୍ରୀ ସାଧୁଚରଣ ମହାନ୍ତି

(ପ୍ରଥମ ସଂସ୍କରଣ)

ମୂଲ୍ୟ ୦ ॰ / ଏକଅଣା ମାତ୍ର ।

# ଉକ୍ତି



ଲେଖିକା ମୋର ନୂଆବୋହୂ — ସେମାନେ ଅମ୍ଭମାନଙ୍କର ପାରିବାରିକ ଅଘଟନଘଟନରେ ଅମ୍ଭମାନଙ୍କଠାରୁ ଦୂରରେ । ମୋର କିନ୍ତୁ ଜଗତରେ ପର କେହି — ଏପରି ଅନେକଟା ବାସନା ଅନାଥା ଥିଲେ ସୁଦ୍ଧା ମୁଁ ପରିବାରରେ ନଗଣ୍ୟ । ତାଙ୍କର ଏତିକି ମୁଁ କରି ପାରି ନିଜକୁ କୃତାର୍ଥ ମନେ କଲି ।

ଅଡ୍ ଲେଖା — ଏ ବିଷୟରେ ଯୋଗ୍ୟତର ବ୍ୟକ୍ତି ଲେଖିଥିଲେ ଭଲ ହୋଇଥାନ୍ତା — କିନ୍ତୁ ମୋର କ୍ଷୁଦ୍ର ମତରେ ଅଧୁନିକ [illegible] କୌଣସି ନାରୀ ଲେଖିକାଙ୍କ ତଳେ ଏହାଙ୍କ ଆସନ ଦେବାକୁ ମୁଁ ନାରାଜ । ପାଠକେ ଏହା ବିଚାର କର ।

କୋଠବାଡ଼ } ସାଧୁଚରଣ ମହାନ୍ତି
୧୨ । ୯ । ୩୨ } ପ୍ରକାଶକ

# ସ୍ମୃତି

ମୋର ଜୀବନର ମଧ୍ୟାହ୍ନ ଶେଷ ପ୍ରାପ୍ତ । ବଟ ଥିଲ ମୋର କଲ୍ପବଟ । ତାକୁ ହରାଇ ମୋର ସମସ୍ତ ସୁଖ ଦୂର ହୋଇଛି । ଆଜି ପ୍ରଭୁ ପଦାରବିନ୍ଦରେ ଆତ୍ମସମର୍ପଣ କରି, ତାଙ୍କ ନିକଟରେ ଏକାନ୍ତ ପ୍ରାର୍ଥନା ମୋର, ତା'ର ସ୍ୱର୍ଗତଃ ସ୍ୱଚ୍ଛ ଅନାବିଳ ଆତ୍ମା ଶାନ୍ତିରେ ରହୁ ।

ତା'ର ସ୍ମୃତି ନିମିତ୍ତ ଏହା ଉତ୍ସର୍ଗ କଲି ।

କୋଠବାଡ଼ି
୧୨ । ୯ । ୩୨

ତା'ର
ଅଭାଗିନୀ
ତୋଜ

## ନିଜକଥା—

ଜୀବନ ଯେତେବେଳେ କଣ୍ଟାଭରା ଥିଲା ସେତେବେଳେ ମୋର ଲେଖିବାର ବାସନା ଅତି ବେଶୀ ଥିଲା । କିନ୍ତୁ କୁଳୀନ କୁଳମାନଙ୍କ ପରି ମୋର ସେ ବାସନାଟିକୁ କ୍ରମେ କ୍ରମବିକାଶ ନ ପାଇ ଆସି ମରିବା ଉପରେ । ତା'ର ସନ୍ଧାନ ମୁଁ କୁତ୍ରାପି ପାଇ ନ ଥିଲି ।

ଦୈବାତ୍ ଶ୍ରୀମାନ୍ ସାଧୁଚରଣଙ୍କ ସହିତ ଦେଖା ଏବଂ ଏ ପ୍ରସଙ୍ଗ ଉତ୍ଥାପନ । ମୋର ନଗଣ୍ୟ ଲେଖା ପ୍ରତି ସେ ଯେ ଅନୁରକ୍ତ ହେଲେ କାହିଁକି ମୁଁ ଜାଣେ ନାହିଁ । ସେ ସ୍ୱତଃପ୍ରବୃତ୍ତ ହୋଇ ଏହାର ପ୍ରକାଶକ ହେଲେ, ମୁଁ ମଧ୍ୟ ଏହା ତାଙ୍କୁ ଦେଲି । ଏଥି ପାଇଁ ମୁଁ ତାଙ୍କୁ ଆଶୀର୍ବାଦ କରୁଛି; ଅଉ ମଧ୍ୟ କୃତଜ୍ଞ ରହିଲି ତାଙ୍କଠାରେ ।

ଆଉପଦେ—ମୋର ଭ୍ରାତୃଦେବ ଇହ ଜଗତରେ ନାହାନ୍ତି—ସେ ଏ ଅଭାଗିନୀକୁ ଏ ଦିଗରେ ଯଥେଷ୍ଟ ଉତ୍ସାହିତ କରିଥିଲେ; ତେଣୁ ତାଙ୍କଠାରେ ଋଣୀ ରହିଛି ।

ଲେଖିକା—



# କୃପାଭିକ୍ଷା ଚଉତିଶା

କ

କରୁଣା ଭଣ୍ଡାର ଥିଲ ପୂର ।

କିଏ ଢେଙ୍କିଗଲା କୂର କର ।

କର୍ମ ଅବଳକୁ ନ ପାଇଲି ସେ ତ ଅଯତ୍ନ ଦେମନ୍ତ୍ରେ ଗଲା ସର,

ଅହେ ବଂଶୀଧାର !

ଦଂଶି ଦେଲାଣି ଏ ତାପ ସର୍ପପର । ୧ ।

ଖ

ଖୋଜୁ ନାହିଁ ଧନ ସୁଖ ଘର,

ଷୀର ସ୍ରବଲେ ସେ ବଷ ମୋର ।

ଖୋଜୁଅଛୁ ପ୍ରଭୁ ପଙ୍କଜ-ପଯୁର ଦେଇ ଏ ହୃଦେ ଶୀତଳ କର

ଅହେ ଚକ୍ରଧର !

ଜଳଅଛୁ ବହ୍ନି ଅତ ପରଖର । ୨ ।

ଗ

ଗୃହେ ଏ ଦୁର୍ଦ୍ଦିନ ଥିଲା ବସି,
ଗଲା ମୋ ସୁଖ ସବୁତ ଶୋଷି ।
ଗରଳକୁ ମଣି ଅମୃତ ପିଇଏ ଭବ ହେଉଅଛୁ ଦବା ନିଃ;
ଅହେ ଚକ୍ରପାଣି !
ତୁମ୍ଭ କୃପାରେ ସୁପଥ ଯିବ ଦିଶି । ୩ ।



ଘ

ଘର ହେଲା ମୋର ଘୋର ବନ;
ଘଟେ ଅଛୁ ଜୀବ-ହତ ଜ୍ଞାନ ।
ଘେନିଲା ନାହିଁତ ହିତ ଉପଦେଶ ମାୟା ମୋହ ସୁଦ୍ଧେ ସେ ବନ୍ଧନ;
ଅହେ ଭଗବାନ !
ତୁମ୍ଭ କର ଶସ୍ତ୍ରେ କି ନୋହିବ ଛିନ୍ନ । ୪ ।



ଙ

ଅଦ୍ଭୁତ ନାହିଁ ହୋଇଲା ଭ୍ରମ,
ଓଷ୍ଠୁ ନାହିଁ ତୁଣ୍ଡେ ତୁମ୍ଭ ନାମ ।
ଅର୍ଜି ଥୋଇଥିଲି ଏତେ ପାପକର୍ମ ଦୁଃସହ ଦୁଃଖେ ଦହୁଛି ମର୍ମ,
ଅହେ ଘନଶ୍ୟାମ !
ଦେହ କାଠରେ ହେଲାଣି ଶିଳା ସମ । ୫ ।



ଚ

ଚଲୁ ନାହିଁ ମୋର ପାଦପାଣି,
ଚରଣ ସ୍ମରଣ ଭୁଲିଲେଣି ।
ଚଣ୍ଡାଲ ଦୁର୍ଗତି ଦେଖି କି କୁମତି ନ କାଣିଲ ଅହଲ୍ୟା ପୁଣି,
ଅହେ ଚିନ୍ତାମଣି !
ଚକ୍ଷୁ ଆଜି ଅନ୍ଧ ହୋଇ ବସିଲେଣି ! ୬ ।



ଛ

ଛିଣ୍ଡାଇ ଦିଅ ଏ ମୋହ ପାଶ,
ଛଡା ଚରଣରେ ରଖ ଅଶ ।
ଛଡଯାଉ ମୋର ଘୋର ଅନ୍ଧକାର ଦିବ୍ୟ ଚକ୍ଷୁ ଦିଅ ହେଉ ଦୃଶ୍ୟ,
ଅହେ ପୀତବାସ !
ଶାନ୍ତି ଦିଅ ଚିତ୍ତୁଁ ନାଶି ଅସନ୍ତୋଷ । ୭ ।



ଜ

ଯନ୍ତ୍ରଣା ହୋଇଲା ଗରୁ ତ୍ରାଣ,
ଜନୁପତି ଦଣ୍ଡ ଏ ପ୍ରମାଣ ।
ଜଣାଇବ କିସ ଅନ୍ତର୍ଯାମୀ ନାଥ ଅନ୍ତର୍ଗତ ଦୁଃଖ କି ନ ଜାଣ ?
ଅହେ ନାରାୟଣ !
ନାମ ଧରିଲେ ଦୁସ୍ତରୁ ପରିତ୍ରାଣ । ୮ ।



ଝ

ଝାଡ଼ ଅରଣ୍ୟ ଏ ଘୋରତମ,
ଝୁଣ୍ଟି ପଡ଼ିଲି ମୁଁ ପାଇ ଶ୍ରମ ।
ଝଟଇ ମୋ ହୃଦ ଆକାଶେ ଶରାଜ ଉଜ୍ଜ୍ୱଳତର ପୂର୍ଣ୍ଣେନ୍ଦୁ ସମ,
ଅହେ ରାଧାଶ୍ୟାମ !
ଏହୁ ଯୁଗଳ ଚରଣ କଳ୍ପଦ୍ରୁମ । ୯ ।



ଞ

ନିଷ୍ଠୁର ଅସହ୍ୟ ଦୁଃଖ ଅତି,
ନୋହିଲ ବସ୍ମର ମୋର ପ୍ରତି ।
ନାମ ବହୁଅଛ କୃପାସିନ୍ଧୁ ପରି ନେବ ଜଳେ ବଷ ଯାଏ ଭ୍ରାନ୍ତି;
ଅହେ ରମାପତି !
ଜୈକଁ ଦୋଷକୁ ଲଭିଲି ଏତେ ଶାସ୍ତି । ୧୦ ।



ଟ

ଟେକି ସୁଧା କ୍ଷୁଧାବେଳେ ଦେଲ,
ଟାକି ଅଛି ଆଶା ଜାଣିଥିଲ ।
ଟୋପାକ ପାଇଁକି କର ପ୍ରସାରନ୍ତୁ ଛଡ଼ାଇ ଗରଳ ପରଶିଲ;
ଅହେ ଅଦମୂଳ !
ଦଣ୍ଡି ପଥରେ ଥୋଇ ତା ହରନେଲ । ୧୧ ।





ଠାବ ଏ ଜୀବକୁ ମିଳ ନାହିଁ,

ଠକ ଦେଲ ପ୍ରଭୁ କାହିଁପାଇଁ ?

ଠିକେ ଅମଙ୍ଗଳ ନାଶେ ତୁମ୍ଭ ନାମ ଶନ୍ତ୍ରଣ ଅଭନ୍ତ୍ରା ଥିଲ ହୋଇ;

ଅହେ ଭବଗ୍ରାହୀ !

ଜନ୍ମ ପାଦିନୀ ଡ ପୁଣ୍ୟ ଅର୍ଜ୍ଜି ନାହିଁ । ୧୨ ।



ଡ଼

ଡାକ ଭକ୍ତଅଛ ଗୌରହର,

ଡୁବ ଚିବ ପାପ ନାମ ଧର ।

ଡେର ଶ୍ରୁତି ପଥ ନାମ ସଙ୍କୀର୍ତ୍ତନେ କେ କେତେ ଅଧମ ଗଲେ ତର ।

ଅହେ ଗୌରହର !

ଢ଼ଙ୍ଗ ଧର୍ମ ଏ ଅଛ ପ୍ରଗ୍ଭର କର । ୧୩ ।



ଢ଼

ଢାଳେ ଭକ୍ତଗଣେ ହୋଇ ତୋଷ,

ହୋଇ ଜଦ୍‌ଗାରଲେ ନାମ ରସ ।

ଢାଳ ବଦ୍ଧ ଗଲ ବ୍ରହ୍ମାଣ୍ଡ ଭେଦାଲ ପଡତ ଢାବ ରହିଛ ଯଶ,

ଅହେ ବଣ୍ଠବାସ !

ତୁମ୍ଭ କୃପା ବଳେ ନୋହୁ ପାରେ କସ । ୧୪ ।



ଣ

ଅନାଥୀ ସଂସାରେ ଦେହ ଧରି,
ଅପଦ ସମ୍ପଦ ଅଛୁ ଘେରି ।
ଏବେ କାହିଁପାଇଁ ମୋ ହୃଦ ମନ୍ଦିରେ ଶଙ୍କାରି କରଇ ଦେଲ ଭରି;
ହେ ଦୟାକାରି !
କରୁଅଛୁ ହୃଅ ଧୀରି ଧୀରି କରି । ୧୫ ।



ତ

ତଳେ ନ ଘଞ୍ଚିଲ ମନୋବାଞ୍ଛା,
ତେଣୁ ଜଣାଉଛୁ ଏହୁ କଥା ।
ତଥାପି କେମନ୍ତେ ଏ ଘୋର ସଙ୍କଟୁ ଜାଳି ଦେଉଅଛୁ ଶତ୍ରୁ ଗଥା;
ଅହେ ଜଗତ୍କର୍ତ୍ତା !
ତୁମ୍ଭେ ଅଟ ପିତା ଏ ଜୀବନ ଦାତା । ୧୬ ।



ଥ

ଥିବ ଯାବେ ବୁଡ଼ିଗଲା ତଦା,
ଥସ୍ଥ ନୁହେ ମତି ତା ଚଗୁରି ।
ଥୋଇ ଏ ହୃଦସ୍ଥାସନେ ପଦ୍ମପାଦ ସେ ବିପଦ୍ସୁ ସୁଖ ନ ସୁମରି;
ଅହେ ନରହରି !
ଏହୁ ଅନୁଗ୍ରହ ଅଛୁ ଅନୁସରି । ୧୭ ।



ଦ

ଦୁର୍ଲ୍ଲଭ ମନୁଷ୍ୟ ଜନ୍ମ ପାଇ,
ଦଗଧ ପ୍ରାଣେ ଶୀତଳ ନାହିଁ ।
ଦୟାମୟ ଦାନସର ବୃଥି ଦାଅ ଏ ଶୋକ ସନ୍ତାପ ନିବର୍ତ୍ତାଇ;
ଅହେ ଲକ୍ଷ୍ମୀସାଇଁ !
ଜାଣ କଣ୍ଠାଗ୍ରତ ପ୍ରାଣ ଅଛୁ ହୋଇ । ୧୮ ।



ଧ

ଧଇର୍ଯ୍ୟ ସମ୍ଭାଳି ଶଗୁବଳି,
ଧ୍ୟାଇ ନାମ ଧନ ଟିକି ଭୁଲି ।
ଧଇଲେ ନାମ ତ ଏ କି ଅଚମ୍ଭିତ ଦ'ଗୁଣେ ଏ ପ୍ରାଣ ଉଠେ ଜଳି;
ଅହେ ବନମାଳି !
ଦୁଃଖ ଘ୍ଟର ଦେଲା ବେଢ଼େ ମହା ବଳୀ । ୧୯ ।



ନ

ନ ଜାଣଇ ଏ କି ପରାଭବ,
ନ ଯାଇ କ୍ଷମା ରହୁଛୁ ଜୀବ ।
ନାହିଁ କିଛି ହାନୀ ସ୍ୱର୍ଗ ନର୍କ ବେଳା ଯହୁଁ କହୁଁ ପ୍ରଭୁ ଠାବ ଦେବ;
ଅହେ ପଦ୍ମନାଭ !
ଏ ତ ତୁମ୍ଭର ସର୍ଜନା ଅଟେ ସର୍ବ । ୨୦ ।



ପ

ପ୍ରପଞ୍ଚ ପ୍ରକୃତି ସ୍ଥିର ନୋହେ,
ପବନଙ୍କ ଗତି ବେଗ ବହେ ।
ପ୍ରଭୁ ନ ଅଗାଧ ସଂସାର ବାରିଧି ବିନା-ନାବେ କେହ୍ନେ ପାର ହୁଏ ?
ଅହେ ଦେବସୟେ !
ମୋର ଦୁର୍ବୁଦ୍ଧିକୁ ଅଛୁ କି ଉପାୟେ । ୨୧ ।



ଫ

ଫିଟିଗଲା ମନ ଧନ ଫାନ୍ଦ,
ଫିଟି ନାହିଁ ମୋହ ମାୟାଛନ୍ଦ ।
ଫେରିବ କି ମନ ହେବ ସଦଜ୍ଞାନ ନିରତେ ଚିନ୍ତି ପଦାରବିନ୍ଦ ?
ଅହେ ଅଦ୍ୱକନ୍ଦ !
କାହିଁ ହରିନେଲ ମୋର ସୁଖାନନ୍ଦ । ୨୨ ।



ବ

ବଟବୃକ୍ଷ ସ୍ଥଳ ତଳେ ବାସ,
ବଞ୍ଚିଥାନ୍ତି କର ଅମ୍ବା ତୋଷ ।
ବଗୁରହିଲ ନାହିଁ ଦେଲିତି ଉପାଡ଼ି ଅଦତ୍ୟ କାରଣେ ହୁଏ ଧ୍ୱଂସ;
ଅହେ ହୃଷୀକେଶ !
ଏହା ନୁହଇ କି ପୁଣି ଭ୍ରମ ଦୋଷ ? ୨୩ ।



ଭ

ଭକ୍ତଙ୍କୁ କରୁଣା ଥାଅ କର,
ଭରସା ତ ତୁମ୍ଭେ ସବୁଙ୍କର ।
ଭଣିଛନ୍ତି ଋଷି ସର୍ବ ଘଟେ ବାସ ସ୍ଥାବର ଜଙ୍ଗମେ ଅଛ ପୂର,
ଅହେ ଗିରିଧାରୀ !
କାହିଁ ବ୍ରହ୍ମ ପରଯନ୍ତେ ଅଛ ପୂର । ୪ ।



ମ

ମନ ମୋ ନିର୍ବୋଧ ନୁହେ ବୋଧ,
ମୁଁ ଅବା କରୁଛି ଅପରାଧ ।
ମନା କରିବାକୁ ନାହିଁ ତୁମ୍ଭ ବଳ ନିଶ୍ଚୟ ଖଣ୍ଡିବ ଏ ବିପଦ,
ଅହେ ଚକ୍ରାୟୁଧ !
ରହୁଅଛି ତ ତୁମ୍ଭର ବଶ୍ୟ ମଧ୍ୟ । ୨୫ ।



ଯ

ଜଗତକର୍ତ୍ତା ଏକେଶ୍ୱର,
ଜଗଜ୍ଜନ ପିତା ମୂଳାଧାର ।
ଜୀବନେ ମରଣେ ଏ ଜୀବ କାରଣେ ଅନ କାହିଁ ଅଛି ପ୍ରତିକାର ?
ଅହେ ଗଦାଧର !
ଦୋଷୀ ହେଲେହେଁ ଡାକୁଛି ବାର ବାର । ୨୬ ।



ର

ରଙ୍କ ରତ୍ନ ହସ୍ତଗଲା ପରି,
ରହୁ ନାହିଁ ଧୃତି ଥିଲୁ ଧରି ।
ସାଜ ନୁହେ ମନ କେଉଁ ବିଷୟରେ ସଂସାର ବେଭାର ଗଲା ସରି,
ଅହେ ମଧୁହାରି !
ଦୁଃଖିନୀର ଦିନ ହେଲା ପୂରା ସରି । ୨୭ ।



ଲ

ଲୋଭ କଲେ ଲାଭ ନାହିଁ କିଛି,
ଲୁବ୍ଧକ-ବଚନେ ପଡ଼ିଅଛି ।
ଲାଳସାରେ ଧରି ଅଛି ସେ ଭଜିବ ମୋହର କର୍ତ୍ତବ୍ୟ ନାହିଁ କିଛି;
ଅହେ ନନ୍ଦବତ୍ସ !
ଭୟେ ଅଭୟପଞ୍ଜର ସୁମରୁଛି । ୨୮ ।



ବ

ବାତୁଳ ପରାୟେ ହେଲି ବୁଝି,
ବିପଦ୍ରୁ ରଖିଛ ମୁଁ ସମାଝି ।
ବେନି ବେଳ ତନୁ ଜାଳି ଦେଉଅଛି ଏହାକୁ ତ ସମ ନୋହେ ବ୍ୟାଧି,
ଅହେ କୃପାନିଧି !
ତୁମ୍ଭ ମହିମା ତାହାକୁ ମହୌଷଧି । ୨୯ ।



ଣ

ସବୁଗଲା କେଣେ ସବୁ ସୁଖ,
ସଂସାରେ ହୋଇଲି ମୁଁ ବିମୁଖ ।
ସାର ନର ଦେହ ଦେବତା ବାଞ୍ଛିତ ମୋହ ଭାଗ୍ୟକୁ ଏ ହେଲା ଧିକ,
ଅହେ ପଦ୍ମମୁଖ !
ଅଜ ଏ ଦୁଃଖକୁ ନାହିଁ ଉପଲକ୍ଷ । ୩୦ ।



ତ

ସାର ଦେଇଅଛୁ ଅନ୍ତର୍ଦାହା,
ଶୁଭୁନାହିଁ କି କହୁଛୁ ଯାହା ।
ସୃଷ୍ଟିଯାକ ବନ୍ଧୁ ବୃଷ୍ଟି ମୋ ଦୃଷ୍ଟିକି ଏତେବେଳେ କେ ହୋଇବ ସାହା,
ଅହେ ଚକ୍ରବାହା !
ଜଲ୍ଲକର୍ତ୍ତା ବିନୁ କେ ବୋଲିବ ଅହା ? ୩୧ ।



ଥ

ଥିଲୁ କୋହେ ଅଜ ଏ କପଣ,
ସ୍ୱଚ୍ଛେ କୃପା କର ବିତରଣ ।
ଶରଣ-ବତ୍ସଳ ପ୍ରସନ୍ନ ବଦନେ ସାନ୍ତ୍ୱନା ଦେଇ ରଖ ଏ ପ୍ରାଣ,
ଅହେ ଅର୍ତ୍ତତ୍ରାଣ !
ଅଶା-ସ୍ରୋତେ ଜୀବ କରେ ସନ୍ତରଣ । ୩୨ ।



ହ

ହୃଦେ ବନ୍ଧୁଅଛୁ ଅନ୍ଧ ଦ୍ୱାର,

ହରି ! ହର ନେଇ ତମଘୋର ।

ଏଷ ନାମ ଦ୍ୱାର ଦଅ ମୋ ହୃଦର ଅଭାଗିନୀ ମୋତେ ଅଗୋଚର,

ଅହେ ବିଶ୍ୱମ୍ଭର !

ପାପୀ ତାରଣେ ତ ନାହିଁ ପରାପର । ୩୩ ।



କ୍ଷ

କ୍ଷମା ମାଗୁଅଛୁ ଅବିରତ,

ଖଣ୍ଡିବାକୁ ମୋର ଏ ଦୁଷ୍କୃତ ।

ରମାନାଥ ପଦେ କରଇ ଦଇନୀ ପ୍ରଣିପାତ ନୋହୁ ବିପରୀତ,

ଅହେ ଗୋପୀନାଥ !

ଅର୍ପୁଅଛୁ ପଦେ ନଶାମଣୀ ଗୀତ । ୩୪ ।



କଟକ ପଣ୍ଡିତ ପ୍ରେସରେ ଶ୍ରୀ ହରମୋହନ ଚରଣ ଦ୍ୱାରା ମେସିନ୍ ଯନ୍ତ୍ରେ ମୁଦ୍ରିତ—୧୯୩୨